# କୁମାରୀଶିକ୍ଷା ।

## ପ୍ରଥମ ଶିକ୍ଷା

ଇଂରେଜୀ ଭାଷାରେ ଯେ ୨୬ ଟି ବର୍ଣ୍ଣ ବ୍ୟବହାର ହୁଏ ଏବଂ ଏହି ପ୍ରତ୍ୟେକ ବର୍ଣ୍ଣର ଦୁଇଗୋଟି ଲେଖା ଆକୃତି ଅଛି । ଯଥା.—

୧ ମ A B C D E F G H I J K L M
N O P Q R S T U V W X Y Z

୨ ୟ a b c d e f g h i j k l m
n o p q r s t u v w x y z

୧ ମ କୁ ବଡ଼ ୨ ୟକୁ ଛୋଟ ଅକ୍ଷର ବୋଲେ , ଏମାନଙ୍କର ଡ଼ାକ ନାମ ପ୍ରକାର ହୁଏ ।

ଏ, ବି, ସି, ଡି, ଇ, ଏଫ୍, ଜି, ଏଚ୍, ଆଇ, ଜେ, କେ, ଏଲ୍, ଏମ୍, ଏନ୍, ଓ, ପି, କିଉ, ଆର, ଏସ୍, ଟି, ଇଉ, ଭି, ଡବ୍ଲୁ, ଏକ୍ସ୍, ଓଆଇ, ଜେଡ୍ ।

ଏହି ଛବିଶ ଗୋଟି ବର୍ଣ୍ଣମାଳା ମଧ୍ୟରେ ଗୋ ୫ ଟି ସ୍ୱର ଓ ଅବଶିଷ୍ଟ ଗୁଡ଼ିକ ବ୍ୟଞ୍ଜନ ବର୍ଣ୍ଣ , ଉଡ଼ିଆ ଭାଷାରେ ବର୍ଣ୍ଣ ସହିତ ଯେ ସ୍ୱର ମିଶ୍ରିତ ହୁଏ ତାହା ମାତ୍ରା ରୂପରେ ପରିଣତ ହୋଇଯାଏ କିନ୍ତୁ ଇଂରେଜୀ ବ୍ୟଞ୍ଜନବର୍ଣ୍ଣ ସହିତ ସ୍ୱର ମିଶ୍ରିତ ହେଲେ ମାତ୍ରା ରୂପରେ ବା ଅନ୍ୟ କୌଣସି ପ୍ରକାରେ ରୂପାନ୍ତରିତ ହୁଏନାହିଁ, କେବଳ ବ୍ୟଞ୍ଜନ ବର୍ଣ୍ଣ ସହିତ ସ୍ୱରବର୍ଣ୍ଣ ସଂଯୋଗ ( ପାର୍ଶ୍ୱବର୍ତ୍ତୀ ) ମାତ୍ର କରନ୍ତିଏ । ନିମ୍ନରେ ସ୍ୱର ଏବଂ ବ୍ୟଞ୍ଜନର ଭାଗକୁ ଦେଖାଗଲା ।

Digitized by PPRACHIN, SOA

ସ୍ୱରବର୍ଣ୍ଣ ଯଥା : —— A E I O U

ବ୍ୟଞ୍ଜନ ବର୍ଣ୍ଣ ଯଥା: —— B C D F G H J K L M
N P Q R S T V W X Y Z

କୌଣସି୨ ସ୍ଥଳରେ W ଏବଂ Y ସ୍ୱରରୂପେ ବ୍ୟବହୃତହୁଅନ୍ତି , ଏହି ଇଂରାଜୀ ସହିତ ଓଡ଼ିଆ ବର୍ଣ୍ଣମାଳାର ନିମ୍ନ ପ୍ରକାର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ଇଂ ସ୍ୱରବର୍ଣ୍ଣ ସାମଞ୍ଜସ୍ୟ ଓଡ଼ିଆ ବର୍ଣ୍ଣ

| | | ହ୍ରସ୍ୱ | ଦୀର୍ଘ |
|---|---|---|---|
| A | = | ଅ, ଆ, ଯ଼ା | ଏ |
| E | = | ଏ | ଇ |
| I | = | ଇ | ଆଇ |
| O | = | | ଓ |
| U | = | ଅ , ଉ | ଇଉ |

ଇଂ ବ୍ୟଞ୍ଜନ ବର୍ଣ୍ଣ ସାମଞ୍ଜସ୍ୟ ଓଡ଼ିଆ ବର୍ଣ୍ଣ ।

| | | | | | |
|---|---|---|---|---|---|
| B | = | ବ | H | = | ହ |
| C× | = | ସ, କ | J | = | ଜ |
| D | = | ଡ | K | = | କ |
| F | = | ଫ | L | = | ଲ |
| G* | = | ଜ, ଗ | M | = | ମ |

× C ରେ e i ଓ y ଯୋଗ ହେଲେ 'ସ' ଉଚ୍ଚାରଣ ହୁଏ ।
* G ରେ e i ଓ y ଯୋଗ ହେଲେ ଜ ଉଚ୍ଚାରଣହୁଏ ; ତଥାପି ଏହିକ୍ଷେ ଏଦେଶୀୟ ନାମ ଲେଖିବାରେ ଏପରିଲେଖେ ବ୍ୟବହାର ହୁଅନ୍ତୁନାହିଁ । ବରଂ G ରେ e. i ଓ y ଯୋଗହେଲେ 'ଗି' ଉଚ୍ଚାରଣ ହୁଏ, ଯଥା:—
ଭଗୀରଥ ; Bhagirathi

Digitized by PPRACHIN, SOA

N = ନ
P = ପ
Q = କ୍ୱ
R = ର
S = ସ
T = ଟ
V = ଭ
W = ୱ [illegible]

X = କ୍ସ, ଗ୍ସ
Y = ଯ୍ବ, ଯଇ, ଇ,
Z = ଜ

ନାମ ନେଇବାରେ Q, W, X, Z
ଅକ୍ଷରେ ବ୍ୟବହାର ହୁଅନ୍ତି ନାହିଁ

## ଦ୍ୱିତୀୟ ଶିକ୍ଷା

### ଉତ୍କଳ ବର୍ଣ୍ଣ ମାଳା ସହିତ ଇଂରାଜୀ ବର୍ଣ୍ଣମାଳାର ସାମଞ୍ଜସ୍ୟ,

### ସ୍ୱରବର୍ଣ୍ଣ

ଅ = a

ଆ = a

ଇ = e, i,

ଈ = ee

ଉ = u

ଊ = oo

ଏ = a,e

ଐ = ai

Digitized by PPRACHIN, SOA

ଓ = O

ଔ = OU କିମ୍ବା OW

---

## ବ୍ୟଞ୍ଜନବର୍ଣ୍ଣ

| | | | | | |
|---|---|---|---|---|---|
| କ | = | Ka | ଦ | — | Da |
| ଖ | = | Kha | ଧ | — | Dha |
| ଗ | = | Ga | ନ | — | Na |
| ଘ | = | Gha, | ପ | — | Pa |
| ଙ | = | Na | ଫ | — | Fa, Pha, |
| ଚ | = | Cha | ବ | — | Ba |
| ଛ | = | Chha | ଭ | — | Bha Va, |
| ଜ | = | Ja | ମ | — | Ma |
| ଝ | = | Jha | ଯବାୟ | - | Ya |
| ଞ | = | Na | ର | — | Ra |
| ଟ | = | Ta | ଲ | — | La |
| ଠ | = | Tha | ଵ | — | Wa, |
| ଡ | = | Da | ଶ | — | Sha |
| ଢ | = | Dha | ଷ | — | Sha |
| ଣ | = | Na | ସ | — | Sa |
| ତ | = | Ta | ହ | — | Ha |
| ଥ | = | Tha | କ୍ଷ | — | Ksha |

Digitized by PPRACHIN, SOA

ଇଂରାଜୀଭାଷାର A, E, I, O, U, ଏହି ସ୍ୱର ମଧ୍ୟରୁ 'A' ନାମକ ସ୍ୱର ଓଡ଼ିଆର,ଅ,ଆ,ଏ, ସମ ନଥିବାରୁ, କା,ଖା ଗା, ଘା ଇତ୍ୟାଦି ଓ କେ, ଖେ, ଗେ, ଘେ ଇତ୍ୟାଦି, ପୂର୍ବଲିଖିତ କ, ଖ, ଗ, ଘ ଅନୁଗାମି ହେବ ଅର୍ଥାତ :—

| | | |
|---|---|---|
| କ, = Ka | କା, = Ka | କେ = Ka |
| ଖ, = Kha | ଖା = Kha | ଖେ = Kha |
| ଗ, = Ga | ଗା = Ga | ଗେ = Ga |

ଇତ୍ୟାଦି

ତେବେ ଇଂରେଜୀର 'E' ନାମକ ସ୍ୱର କ୍ରମ ଉଚ୍ଚାରଣରେ 'ଏ' ଉଚ୍ଚାରିତ ହେଉଥିବାରୁ କୌଣସି କୌଣସି ସ୍ଥଳରେ ଏକାକ୍ଷର କାର୍ଯ୍ୟ 'E' ଦ୍ୱାରା ମଧ୍ୟ, ସମ୍ପାଦନ କରା ଯାଇ ପାରିବ ।

---

ଇକାରଯୁକ୍ତ ବର୍ଣ୍ଣମାଳା ।

| | |
|---|---|
| କି — Ki | ଢି — Dhi |
| ଖି — Khi | ଣି — Ni |
| ଗି — Gi | ତି — Ti |
| ଘି — Ghi | ଥି — Thi |
| ଚି — Chi | ଦି — Di |
| ଛି — Chhi | ଧି — Dhi |
| ଜି — Ji | ନି — Ni |
| ଝି — Jhi | ପି — Pi |
| ଟି — Ti | ଫି — Fi, Phi |
| ଠି — Thi | ବି — Bi |
| ଡି — D | ଭି — Bhi, Vi |

Digitized by PPRACHIN, SOA

| | |
|---|---|
| ମି — Mi | ଶି — Shi |
| ଯି ବା ଯ୍ୱି - Yi | ଷି — Shi |
| ରି — Ri | ସି — Si |
| ଲି — Li | ହି — Hi |
| ୱି — Wi | କ୍ଷି — KShi |

ଈକାର ଯୁକ୍ତ ବର୍ଣ୍ଣମାଳା *

| | |
|---|---|
| କୀ—Kee | ଧୀ—Dhee |
| ଖୀ—Khee | ନୀ—Nee |
| ଗୀ—Gee | ପୀ—Pee |
| ଘୀ—Ghee | ଫୀ—Fee, Phee, |
| ଚୀ—Chee | ବୀ—Bee |
| ଛୀ—Chee | ଭୀ—Bhee, Vee, |
| ଜୀ—Jee | ମୀ—Mee |
| ଝୀ—Jhee | ଯୀ ବା ଯ୍ୱୀ Yee |
| ଟୀ—Tee | ରୀ—Ree |
| ଠୀ—Thee | ଲୀ—Lee |
| ଡୀ—Dee | ୱୀ—Wee |
| ଢୀ—Dhee | ଶୀ—Shee |
| ଣୀ—Nee | ଷୀ—Shee |
| ତୀ—Tee | ସୀ—See |
| ଥୀ—Thee | ହୀ—Hee |
| ଦୀ—Dee | କ୍ଷୀ—Kahee |

* ନାମ ଲେଖିବାରେ ଅଧିକାଂଶ ସ୍ଥଳରେ ହ୍ରସ୍ୱଇକାର ଓ ଦୀର୍ଘ ଈକାର I ସ୍ୱର ଯୋଗ କେ ବ୍ୟାବହୃତ ହୁଏ ।

Digitized by PPRACHIN, SOA

## ଉ ଯୁକ୍ତ ବର୍ଣ୍ଣମାଳା

କୁ = Ku
ଖୁ = Khu
ଗୁ = Gu
ଘୁ = Ghu
ଚୁ = Chu
ଛୁ = Chhu

ଜୁ = Ju.
ଝୁ = Jhu
ଟୁ = Tu
ଠୁ = Thu
ଡୁ = Du
ଢୁ = Dhu
ଣୁ = Nu
ତୁ = Tu
ଥୁ = Thu
ଦୁ = Du

ଧୁ = Dh u
ନୁ = Nu
ପୁ = Pu
ଫୁ = Fu, Phu
ବୁ = Bu
ଭୁ = Bhu Vu
ମୁ = Mu
ଯୁ ବା ୟୁ Yu
ରୁ = Ru
ଲୁ = Lu
ୱୁ = Wu
ଶୁ = Shu
ଷୁ = Shu
ସୁ = Su
ହୁ = Hu
କ୍ଷୁ = Kshu

---

## ଊକାର ଯୁକ୍ତ ବର୍ଣ୍ଣମାଳା ।

କୂ = Koo
ଖୂ = Khoo
ଗୂ = Goo
ଘୂ = Ghoo

ଚୂ = Choo
ଛୂ = Chhoo
ଜୂ = Joo
ଝୂ = Jhoo

Digitized by PPRACHIN, SOA

ଟୁ=Too
ଠୁ=Thoo
ଡୁ=Doo
ଢୁ=Dhoo
ଣୁ=Noo
ତୁ=Too
ଥୁ=Thoo
ଦୁ=Doo
ଧୁ=Dhoo
ନୁ=Noo
ପୁ=Poo
ଫୁ=Phoo, Foo

ବୁ=Boo
ଭୁ=Bhoo
ମୁ=Moo
ଯୁ ବା ୟୁ =Yoo
ରୁ=Roo
ଲୁ=Loo
ୱୁ=Woo
ଶୁ=Shoo
ଷୁ=Shoo
ସୁ=Soo
ହୁ=Hoo
କ୍ଷୁ=KShoo

---

## ଏକାର ଯୁକ୍ତ ବର୍ଣ୍ଣମାଳା । *

## ଐକାର ଯୁକ୍ତ ବର୍ଣ୍ଣମାଳା ।

କୈ=Kai
ଖୈ=Khai
ଗୈ=Gai
ଘୈ=Ghai
ଚୈ=Chai
ଛୈ=Chhai
ଜୈ=Jai

ଝୈ=Jhai
ଟୈ=Tai
ଠୈ=Thai
ଡୈ=Dai
ଢୈ=Dhai
ଣୈ=Nai
ତୈ=Tai
ଥୈ=Thai

---

* ଅକାର ଯୁକ୍ତ ବର୍ଣ୍ଣମାଳା ହଇଲେ ଏହାକୁ ବଶଦରୂପେ ବୁଝାଇ ଦିଆଯାଇଥିବାରୁ ଏଠାରେ ଛାପା ନ ହେଲା ।

Digitized by PPRACHIN, SOA

ଡୈ—Dai
ଧୈ—Dhai
ନୈ—Nai
ପୈ—Pai
ଫୈ—Phai ; Fai
ବୈ— Bai
ଭୈ— Bhai , Vai
ମୈ—Mai
ଯୈ ବା ୟୈ=Yai

ରୈ—Rai
ଲୈ—Lai
ୱୈ—Wai
ଶୈ—Shai
ଷୈ—Shai
ସୈ—Sai
ହୈ—Hai
କ୍ଷୈ—KShai

ଓକାର ଯୁକ୍ତ ବର୍ଣ୍ଣମାଳା ।

କୋ—Ko
ଖୋ—Kho
ଗୋ—Go
ଘୋ—Gho
ଚୋ—Cho
ଛୋ—Chho
ଜୋ—Jo
ଝୋ—Jho
ଟୋ—To
ଠୋ—Tho
ଡୋ—Do
ଢୋ—Dho
ଣୋ—No

ତୋ—To
ଥୋ—Tho
ଦୋ—Do
ଧୋ—Dho
ନୋ—No
ପୋ—Po
ଫୋ—Pho,-Fo
ବୋ—Bo
ଭୋ—Vo , Bho
ମୋ—Mo
ଯୋ ବା ୟୋ=Yo
ରୋ—Ro
ଲୋ—Lo

Digitized by PPRACHIN, SOA

ୱୋ—Wo
ଶୋ—Sho
ଷୋ—Sho
ସୋ—So
ହୋ—Ho
କ୍ଷୋ—KSho

---

## ଔକାର ଯୁକ୍ତ ବର୍ଣ୍ଣମାଳା । *

କୌ—Kow
ଖୌ—Khow
ଗୌ—Gow
ଘୌ—Ghow
ଚୌ—Chow
ଛୌ—Chhow
ଜୌ—Jow
ଝୌ—Jhow
ଟୌ—Tow
ଠୌ—Thow
ଡୌ—Dow
ଢୌ—Dhow
ଣୌ—Now
ତୌ—Tow
ଥୌ—Thow
ଦୌ—Dow
ଧୌ—Dhow
ନୌ—Now
ପୌ—Pow
ଫୌ—Phow,fow
ବୌ—Bow
ଭୌ—Bhow
ମୌ—Mow
ଯୌ ବା ୟୌ—Yow
ରୌ—Row
ଲୌ—Low
ୱୌ—Wow
ଶୌ—Show
ଷୌ—Show
ସୌ—Sow
ହୌ—How
କ୍ଷୌ—KShow

---

* ଏଠାରେ ସମସ୍ତ W ପରିବର୍ତ୍ତେ U ମଧ୍ୟ ବ୍ୟବହାର କରାଯାଇ ପାରିବ ।

Digitized by PPRACHIN, SOA

## ତୃତୀୟ ଶିକ୍ଷା ।

### ସ୍ୱରବର୍ଣ୍ଣଯୋଜନା ।

ରମାନାଥଦେବ । ଏହିନାମକୁ ଯୋଜନା କରିବାକୁ ହେଲେ ଏହିନାମରେ କେତୋଟିସ୍ୱର ଓ କେତୋଟି ବ୍ୟଞ୍ଜନବର୍ଣ୍ଣ ଅଛି ତାହାଦେଖିବାର ଆବଶ୍ୟକ ଏହିନାମ ମଧ୍ୟରୁ ସ୍ୱର ଓ ବ୍ୟଞ୍ଜନବର୍ଣ୍ଣ ଯଦିଭାଗ କରିଦିଅ ଯାଇ ପାରିବ ତେବେ ଇଂରାଜୀରେ ଅକ୍ଷର ବସାଇ ଦେବାକୁ କୌଣସି କଷ୍ଟ ହେବନାହିଁ କାରଣ ଇଂରାଜୀ ଭାଷାରେ ସ୍ୱରବର୍ଣ୍ଣ ବ୍ୟଞ୍ଜନବର୍ଣ୍ଣ ସହିତ ମିଶ୍ରିତ ହୋଇ ବ୍ୟଞ୍ଜନବର୍ଣ୍ଣକୁ ରୂପାନ୍ତରିତ କରେନାହିଁ । କେବଳବ୍ୟଞ୍ଜନ ବର୍ଣ୍ଣର ପାର୍ଶ୍ୱରେ ଥାଇ ଉକ୍ତବର୍ଣ୍ଣର ଉଦ୍ଦେଶ୍ୟ ପ୍ରକାଶ କରାଏ ମାତ୍ର ; ଏଣୁ ଏହି ରମାନାଥ ଦେବ ପଦକୁ ଅମ୍ଭେ ନିମ୍ନପ୍ରକାରେ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣରେ ଭାଗ କରିବାକୁ ସକ୍ଷମହେବୁଁ ।

ଯଥା :—

( ର + ଅ ) = ର

( ମ + ଆ ) = ମା

( ନ + ଆ ) = ନା

( ଥ + ଅ ) = ଥ

( ଦ + ଏ ) = ଦେ

( ବ + ଅ ) = ବ

ଅର୍ଥାତ୍ ରମାନାଥ ଦେବ ପଦମଧ୍ୟରେ , ର , ଅ , ମ , ଆ , ନ , ଆ , ଥ , ଅ , ଦ , ଏ , ବ , ଅ , ଏରୂପ କେତୋଟି ସ୍ୱର ଓ ବ୍ୟଞ୍ଜନବର୍ଣ୍ଣ ପ୍ରାପ୍ତ ହେଉଅଛି ।

ଏହାକୁ ଇଂରାଜୀରେ ଯଦି ଲେଖିବାକୁ ହୁଏ ତେବେ ସାମ୍ୟ ବର୍ଣ୍ଣ ସାହାଯ୍ୟରେ ସେକାର୍ଯ୍ୟ ଅନାୟାସରେ ସମାଧାନ ହୋଇପାରେ ;— ଯଥା ର , ମ , ନ , ଥ , ଦ , ବ , ଇଂରାଜୀ ସାମଞ୍ଜସ୍ୟ ଅକ୍ଷର

Digitized by PPRACHIN, SOA

R, M, N, TH, D, B ସହିତ ଅ,ଅ , ଅ , ଅ , ଏ , ଅ
ଇଂରାଜୀଭାଷାର ଅକ୍ଷର A,A,A,A, A ବା E,A, ଯୋଗ
( ପାର୍ଶ୍ୱବର୍ତ୍ତୀ ) ହୋଇ ରମାନାଥ ଦେବ ପଦ ଅନାୟାସରେ ପ୍ରାପ୍ତ
ହେବ ଯଥା RA MA NA THA DE BA
ର ମା ନା ଥ ଦେ ବ

ହରିମୋହନ ।

ଏହିନାମ ମଧ୍ୟରେ , ହ , ଅ , ର , ଇ , ମ , ଓ , ହ , ଅ , ନ ,
ଅ, ସ୍ୱର ଓ ବ୍ୟଞ୍ଜନ ମିଶ୍ରିତରେ ଉକ୍ତ ପଦ ସିଦ୍ଧ ହୋଇଅଛି
ଅର୍ଥାତ୍ ହ ଠାରେ ଅ ଯୁକ୍ତ ହୋଇ 'ହ' ହୋଇଅ
ର ଠାରେ ଇ ଯୁକ୍ତ ହୋଇ 'ରି' ହୋଇଅଛି
ମ ଠାରେ ଓ ଯୁକ୍ତ ହୋଇ 'ମୋ' ହୋଇଅ
ହ ଠାରେ ଅ ଯୁକ୍ତ ହୋଇ 'ହ' ହୋଇଅଛି
ନ ଠାରେ ଅ ଯୁକ୍ତ ହୋଇ 'ନ' ହୋଇଅଛି
ଫଳତଃ ହ , ର , ମ , ହ , ନ , ରେ , ଅ , ଇ , ଓ
ଅ , ଅ ' ଯୁକ୍ତ ହୋଇ ହରିମୋହନ ହୋଇଅଛି

ହରିମୋହନ ଇଂରାଜୀ

HARI MOHANA

H ଠାରେ A ସଂଯୋଗ ( ପାର୍ଶ୍ୱବର୍ତ୍ତୀ ) ହୋଇ ହ ହୋଇଅଛି
R ଠାରେ I ସଂଯୋଗ ( ପାର୍ଶ୍ୱବର୍ତ୍ତୀ ) ହୋଇ ରି ହୋଇଅଛି
M ଠାରେ O ସଂଯୋଗ ( ପାର୍ଶ୍ୱବର୍ତ୍ତୀ ) ହୋଇ ମୋ ହୋଇଅଛି
H ଠାରେ A ସଂଯୋଗ ( ପାର୍ଶ୍ୱବର୍ତ୍ତୀ ) ହୋଇ ହ ହୋଇଅଛି
N ଠାରେ A ସଂଯୋଗ ( ପାର୍ଶ୍ୱବର୍ତ୍ତୀ ) ହୋଇ ନ ହୋଇଅଛି



Digitized by PPRACHIN, SOA

ଅପରନ୍ତୁ କୌଣସି ନାମ ଇଂରାଜୀ ଅକ୍ଷରରେ ପରିବର୍ତ୍ତନ କଲେ ଯଦି ସେହି ନାମର ଶେଷରେ ଅକାର ସ୍ୱର ଥାଏ ତେବେ ତାହାକୁ ଯଥାଯୁକ୍ତ ରୂପ ବ୍ୟବହାର କରାହେବ । ଯଥା :—

ଦେବ, DEBA ଲେଖିବା ପରିବର୍ତ୍ତରେ DEB
ନାଥ, NATHA ଲେଖିବା ପରିବର୍ତ୍ତରେ NATH
କଟକ, KATAKA ଲେଖିବା ପରିବର୍ତ୍ତରେ KATAK

ଇତ୍ୟାଦି; କିନ୍ତୁ ଯଦି ଶେଷ ବର୍ଣ୍ଣରେ ଅକାର ସ୍ୱର ଥାଇ, ଅକାର ଉଚ୍ଚାରଣ ଦୀର୍ଘ ହେଉଥାଏ, ତେବେ ସେସ୍ଥଳେ ଅକାରର ସାମଞ୍ଜସ୍ୟ 'A' ବ୍ୟବହାର କରାହେବ । ଯଥା = ମିଶ୍ର = MISRA ଏଠାରେ 'ଶ୍ର' ଅକ୍ଷର ଉପରେ ଅକାର ସ୍ପଷ୍ଟ ରୂପେ ଉଚ୍ଚାରିତ ହେଉଥିବା ସ୍ଥଳେ ହସନ୍ତ କରାଯାଇ ନପାରେ ।

ହସନ୍ତ ଚିହ୍ନ ଲେଖିଲେ କୌଣସି କ୍ଷତି ନ ହେଉ ଥିଲେ ମଧ୍ୟ 'ମିଶ୍ର' ପଦ ଉଚ୍ଚାରଣ ଠିକ ନ ହୋଇ ମିଶର ହୋଇ ଉଚ୍ଚାରିତ ହେବ, ହସନ୍ତ ବର୍ଣ୍ଣ ବ୍ୟବହାର କଲେ ହସନ୍ତ ବର୍ଣ୍ଣ ସହିତ ଇଂରାଜୀର ସ୍ୱର ଯୁକ୍ତ ହେବାର ଆବଶ୍ୟକ ନାହିଁ । ଯଥା :——

କଟକ KATAK ଏଠାରେ ଶେଷ K ବ୍ୟଞ୍ଜନବର୍ଣ୍ଣ ସହିତ ସ୍ୱର A ଯୋଗ ହେଲ ନାହିଁ ଯେହେତୁ ଶେଷ 'କ' କୁ ହସନ୍ତ ସ୍ୱରୂପ ବ୍ୟବହାର କରାହୋଇଅଛି । ନିମ୍ନେ କେତେକ ଉଦାହରଣ ମଧ୍ୟ ଇଂରାଜୀରେ ଦିଆଗଲା । ଯଥା

ସୋନପୁର = SONPUR
ଭିଜାଗାପଟ୍ଟମ୍ = VIGIGAPATAM
ତାଳଚେର = TALCHER
ବାକ୍‌ଦେବୀ = BAK-DEBI
ଶରତ୍ ଚନ୍ଦ୍ର = SARAT CHANDRA

ଇତ୍ୟାଦି ।

Digitized by PPRACHIN, SOA

ହସନ୍ତ ବର୍ଣ୍ଣ ନଥାଇ ଶେଷରେ, ଇକାର, ଉକାର, ଏକାର ବା ଓକାର ଥିଲେ ତଦଉପଯୋଗୀ ଇଂରାଜୀ ସ୍ୱର ବ୍ୟବହାର କରିବ ଯଥା —

| | | |
|---|---|---|
| ଦେବି | = | DEBI |
| ରାସବିହାରି | = | RASBIHARI |
| ରଘୁ | = | RAGHU |
| ମଧୁ | = | MADHU |
| ଓକେ | = | OKA * |
| ରାଓ | = | RAO |

### ଚତୁର୍ଥଶିକ୍ଷା
### ବ୍ୟଞ୍ଜନବର୍ଣ୍ଣଯୋଜନା

ଇଂରାଜୀରେ ନାମ ଇତ୍ୟାଦ ଲେଖିବାରେ ଯେପରି ସ୍ୱର ବର୍ଣ୍ଣ ବ୍ୟଞ୍ଜନବର୍ଣ୍ଣର ପରବର୍ତ୍ତୀ ହୋଇ ଉଚ୍ଚାରଣୀୟ ଅକ୍ଷର ପ୍ରକାଶ କରେ ତଦ୍ରୂପ ଯୁକ୍ତ ଅକ୍ଷରମଧ୍ୟ ସାମଞ୍ଜସ୍ୟ ଅକ୍ଷରସମୂହ ସଂଯୋଗରେ ପ୍ରକାଶ ହୁଏ ।

ଯୁକ୍ତ ବର୍ଣ୍ଣରେ ଅକାର ସ୍ପଷ୍ଟଭାବେ ଉଚ୍ଚାରିତ ହେଉଥିଲେ ଭାଷାର ଯୁକ୍ତବର୍ଣ୍ଣ ଇଂରାଜୀରେ ପରିବର୍ତ୍ତିତ ହୋଇ ଅକାର ଅର୍ଥାତ୍ A ସଙ୍ଗଦାରହେ । ଅନ୍ୟ ସ୍ୱରର ଅବଶ୍ୟକ କରୁଥିଲେ ସେହି ସ୍ୱର ଉପଯୋଗି ଅକ୍ଷର ବ୍ୟବହାର ହୋଇ ପଦସିଦ୍ଧ ହୁଏ ଅର୍ଥାତ୍ ନନ୍ଦ, ଇତ୍ୟାଦ ଯୁକ୍ତବର୍ଣ୍ଣ ଉଚ୍ଚାରଣ ସମୟରେ ଅକାରର ସ୍ପଷ୍ଟ ଉଚ୍ଚାରଣ ହେଉଅଛି ଏଣୁ ସେସବୁକୁ ଇଂରାଜୀରେ ପରିଣତ କରିବାକୁ ହେଲେ ନକାର ସ୍ଥାନରେ N ଡକାର ସ୍ଥାନରେ

* ମହାରାଷ୍ଟ୍ରୀୟ ଉପାଧି ବିଶେଷ

Digitized by PPRACHIN, SOA

D ବ୍ୟବହାର କର 'ଏ' ସ୍ଵର ସମସ୍ତେ A ବ୍ୟବହାର କରିବାକୁ ହେବ ।

ଉଦ୍ଧୃତ ,ଣ୍ଡ' ପକ୍ଷରେ ନ ସମସ୍ତେ N , ଧ ସମସ୍ତେ DH ବ୍ୟବହାର କର ଅକାର ସ୍ଵର ସହାରେ A ବ୍ୟବହାର ହେବ । ଣ୍ଟ , ଷ୍ଟ ଇତ୍ୟାଦି ଅନ୍ୟାନ୍ୟ ଯୁକ୍ତବର୍ଣ୍ଣ ମଧ୍ୟ ଉଦ୍ଧୃତ ହେବ ତେବେ ଇକାର ଉକାର ଏକାର ଇତ୍ୟାଦି ଧ୍ୱନିଯୁକ୍ତ କରିବାକୁ ହେଲେ ତଦ୍ ଉପଯୋଗୀ ଅକ୍ଷର ତାହା ପରେ ବସିବାକୁ ହେବ, ଯଥା —

ଣ୍ଡି = NDI ଣ୍ଢୁ = NDHU ଏଠାରେ ଇକାର ସମସ୍ତେ I ଓ ଉକାର ସମସ୍ତେ U ବ୍ୟବହାର ହୋଇଅଛି ।

ନିମ୍ନରେ ସହାୟକ ନେ·ଡ଼ ଯୁକ୍ତ ବର୍ଣ୍ଣର ଉଦାହରଣ ଦେଖାଇ ଦଅଗଲା ଯଥା —

ଦ୍ଵିବ୍ୟଞ୍ଜନ ବର୍ଣ୍ଣର ସଂଯୋଗ ।

କ + କ = କ୍କ — Cca
କ + ତ = କ୍ତ — Kta
ଗ + ଦ = ଗ୍ଦ — Gda
ଗ + ଧ = ଗ୍ଧ — Gdha
ଗ + ବ = ଗ୍ବ — Gba
ଙ + କ = ଙ୍କ — Nka
ଙ + ଖ = ଙ୍ଖ — Nkha
ଙ + ଗ = ଙ୍ଗ — Nga
ଙ + ଘ = ଙ୍ଘ — Ngha
ଚ + ଚ = ଚ୍ଚ — Chcha or 'tch ଛ + ଚ
ଚ + ଛ୍ର = ଚ୍ଛ୍ର — ChChha
ଜ + ଞ = ଜ୍ଞ — Jna

Digitized by PPRACHIN, SOA

ଞ + ଚ = ଞ୍ଚ — Ncha

ଞ + ଛ = ଞ୍ଛ — Nchha

ଞ + ଜ = ଞ୍ଜ — Nja

ଞ + ଝ = ଞ୍ଝ — Njha

ଟ + ଟ = ଟ୍ଟ — Tta

ଡ + ଗ = ଡ୍ଗ — Dga

ଣ + ଟ = ଣ୍ଟ — Nta

ଣ + ଠ = ଣ୍ଠ — Ntha

ଣ + ଡ = ଣ୍ଡ — Nda

ଣ + ଢ = ଣ୍ଢ — Ndha

ତ + ତ = ତ୍ତ — Tta

ତ + କ = ତ୍କ — Tka

ତ + ପ = ତ୍ପ — Tpa

ତ + ସ = ତ୍ସ — Tsa

ଦ + ଗ = ଦ୍ଗ — Dga

ଦ + ଘ = ଦ୍ଘ — Dgha

ଦ + ଦ = ଦ୍ଦ — DDa

ଦ + ଧ = ଦ୍ଧ — DDha

ଦ + ବ = ଦ୍ବ — Dba

ଦ + ଭ = ଦ୍ଭ — Dbha

ନ + ତ = ନ୍ତ — Nta

ନ + ଥ = ନ୍ଥ — Ntha

ନ + ଦ = ନ୍ଦ — Nda

ନ + ଧ = ନ୍ଧ — Ndha

Digitized by PPRACHIN, SOA

ପ + ସ = ପ୍ସ — Psa
ପ + ପ = ପ୍ପ — Ppa
ମ + ପ = ମ୍ପ — Mpa
ମ + ଫ = ମ୍ଫ — Mpha
ମ + ଭ = ମ୍ଭ — Mbha
ଲ + କ = ଲ୍କ — Lka
ଲ + ପ = ଲ୍ପ — Lpa
ଶ + ଚ = ଶ୍ଚ — Scha
ଷ + କ = ଷ୍କ — Ska
ଷ + ଟ = ଷ୍ଟ — Sta
ଷ + ଠ = ଷ୍ଠ — Stha
ଷ + ପ = ଷ୍ପ — Spa
ଷ + ଫ = ଷ୍ଫ — Spha
ସ + କ = ସ୍କ — Ska
ସ + ଖ = ସ୍ଖ — Skha
ସ + ତ = ସ୍ତ — Sta
ସ + ଥ = ସ୍ଥ — Stha
ସ + ପ = ସ୍ପ — Spa
ସ + ଫ = ସ୍ଫ — Spha

—:÷O÷:—

## ତିନ ବର୍ଣ୍ଣର ସଂଯୋଗ

କ + ତ + ର — କ୍ତ୍ର — Ktra
କ + ଷ + ଣ — କ୍ଷ୍ଣ — Kshna
କ + ଷ + ମ — କ୍ଷ୍ମ — Kshma

Digitized by PPRACHIN, SOA

| | | | | | | | | |
|---|---|---|---|---|---|---|---|---|
| ତ | + | ନ | + | ଯ | — | ତ୍ନ୍ୟ | — | Tnya |
| ତ | + | ମ | + | ଯ | — | ତ୍ମ୍ୟ | — | Tmya |
| ନ | + | ତ | + | ର | — | ନ୍ତ୍ର | — | Ntra |
| ନ | + | ତ | + | ବ | — | ନ୍ତ୍ୱ | — | Ntwa |
| ନ | + | ତ | + | ଯ | — | ନ୍ତ୍ୟ | — | Ntya |
| ନ | + | ଦ | + | ର | — | ନ୍ଦ୍ର | — | Ndra |
| ନ | + | ଦ | + | ଯ | — | ନ୍ଦ୍ୟ | — | Ndya |
| ନ | + | ଧ | + | ର | — | ନ୍ଧ୍ର | — | Ndhra |
| ନ | + | ଧ | + | ଯ | — | ନ୍ଧ୍ୟ | — | Ndhya |
| ନ | + | ନ | + | ଯ | — | ନ୍ନ୍ୟ | — | NNya |
| ମ | + | ପ | + | ର | — | ମ୍ପ୍ର | — | Mpra |
| ମ | + | ଭ | + | ର | — | ମ୍ଭ୍ର | — | Mbhra |
| ର | + | ଚ | + | ଚ | — | ର୍ଚ୍ଚ | — | Rchcha |
| ର | + | ଚ | + | ଛ | — | ର୍ଚ୍ଛ | — | Rchcha |
| ର | + | ଜ | + | ଜ | — | ର୍ଜ୍ଜ | — | Rja |
| ର | + | ଣ | + | ଣ | — | ର୍ଣ୍ଣ | — | Rna |
| ର | + | ତ | + | ତ | — | ର୍ତ୍ତ | — | Rtta |
| ର | + | ଦ | + | ଦ | — | ର୍ଦ୍ଦ | — | Rda |
| ର | + | ଦ | + | ଧ | — | ର୍ଦ୍ଧ | — | Rdha |
| ର | + | ଦ | + | ର | — | ର୍ଦ୍ର | — | Rdra |
| ର | + | ମ | + | ମ | — | ର୍ମ୍ମ | — | Rma |
| ର | + | ଯ | + | ଯ | — | ର୍ଯ୍ୟ | — | Rjya |
| ର | + | ଲ | + | ଲ | — | ର୍ଲ୍ଲ | — | Rlla |
| ର | + | ଶ | + | ବ | — | ର୍ଶ୍ୱ | — | Rswa |

Digitized by PPRACHIN, SOA

ଷ + ଟ + ର — ଷ୍ଟ୍ର — Stra
ସ + ପ + ର — ସ୍ପ୍ର — Spra
ସ + ତ + ର — ସ୍ତ୍ର — Stra
ସ + ଥ + ଯ — ସ୍ଥ୍ୟ — Sthya

ମିଶ୍ର ସଂଯୋଗ—ଗୁରୁଅକ୍ଷର ।

ନ + ତ + ର + ଯ — ନ୍ତ୍ର୍ୟ — Ntrya
ର + ତ + ତ + ଯ — ର୍ତ୍ତ୍ୟ — Rtya

---

## ମାତ୍ରା ସଂଯୋଗ

### ଯଫଳା

କ + ଯ = କ୍ୟ — Kya. ଯଥା :— ଶାକ୍ୟସିଂହ
Sakya Sinha

ଦ + ଯ = ଦ୍ୟ — Dya. ଯଥା:— ବଦ୍ୟନାଥ
Badyanath

ତ + ଯ = ତ୍ୟ — Tya. ଯଥା:— ସତ୍ୟବାଦୀ
Satyabady

ସ + ଯ = ସ୍ୟ — Sya. ଯଥା:— କାସ୍ୟପ
Kasyapa

### ରଫଳା *

ବ + ର = ବ୍ର — Bra, ଯଥା: ବ୍ରଜମୋହନ Brajamohan

କ + ର = କ୍ର — Kra ଯଥା:
Cra } ଚକ୍ରଧର Chacradhar

---

* ଋକାର କାର୍ଯ୍ୟ ରଫଳାଦ୍ୱାରା ସମ୍ପାନ କରାଯାଇପାରେ ଅର୍ଥାତ୍ ଋକାର ସହିତ ଋକାର ଯୋଗକର ବାକୁହେବ ।

Digitized by PPRACHIN, SOA

ଶ + ର = ଶ୍ର — Shra ଯଥା: ଶ୍ରଧାକର = Shradhakar

ପ + ର = ପ୍ର — Pra ଯଥା : ବିପ୍ରଦାସ = Bipra Das

ଲ ଫଳା

ଲ + ଲ = ଲ୍ଲ — Lla ଯଥା : ବଲ୍ଲଭ = Ballabha

ବ ଫଳା ✻

ଶ + ବ = ଶ୍ୱ — Shwa ଯଥା : ବିଶ୍ୱନାଥ — Bishwanath

ଜ + ବ = ଜ୍ୱ — Jwa ଯଥା : ଜ୍ୱାଳାମୁଖୀ — Jwalamukhi

ଧ + ବ = ଧ୍ୱ — Dhwa ଯଥା : ମକରଧ୍ୱଜ ଦାସ — Makara dhwaja Dass

ମ ଫଳା

କ + ମ = କ୍ମ — Kma, ଯଥା: ରୁକ୍ମିଣୀ — Rukmini

ଦ + ମ = ଦ୍ମ — Dma, ଯଥା : ପଦ୍ମଲୋଚନ — Padmalochan

ହ + ମ = ହ୍ମ — Hma, ଯଥା : ବ୍ରାହ୍ମଣୀ — Brahmani

କ୍ଷ + ମ = କ୍ଷ୍ମ — Kshma ଯଥା : ଲକ୍ଷ୍ମୀ — Lakshmi

ନ ଫଳା

ପ + ନ = ପ୍ନ — Pna, ଯଥା ସପ୍ନେଶ୍ୱର — Sapneswar

ତ + ନ = ତ୍ନ — Tna, ଯଥା: ରତ୍ନାକର — Ratnakar

ଘ + ନ = ଘ୍ନ — Ghna, ଯଥା ; ଶତ୍ରୁଘ୍ନ — Satrughna

ଣ ଫଳା ।

ଷ + ଣ = ଷ୍ଣ — Shna ଯଥା କୃଷ୍ଣ — Krushna

ଅନ୍ୟାନ୍ୟ ସଂଯୁକ୍ତ ଶ୍ରେଣୀ ମଧ୍ୟ ଉପରୋକ୍ତ ପ୍ରକାରେ ମାତ୍ର ସଂଯୋଗ କରାଯାଇ ପାରିବ , ସୁବୋଧ ନିମନ୍ତେ ଉପରେ କେତେକ ଉଦାହରଣ ଦେଖାଇ ଦିଆଗଲା ॥

---

✻ ବଫଳା B ଦ୍ୱାରା ନହେଁ W ଦ୍ୱାରା ଲେଖାହେବ ।

Digitized by PPRACHIN, SOA

ପଞ୍ଚମଶିକ୍ଷା ।

ଯୌଗିକ ନାମ ଲେଖିବାରେ ଇଂରାଜୀର ବଡ଼ ଅକ୍ଷର ଓ ଛୋଟ ଅକ୍ଷର ଉଭୟ ବ୍ୟବହାର ହୋଇଥାଏ, ନାମର ଆଦ୍ୟ ଅକ୍ଷର ବଡ଼ ଓ ଅନ୍ୟ ସମସ୍ତ ଛୋଟ ଅକ୍ଷର ଦ୍ୱାରା ଲେଖା ହୁଏ ନାମ ଏକରୁ ଅଧିକ ପଦ ବିଶିଷ୍ଟ ହୋଇଥିଲେ ଓ ପ୍ରତ୍ୟେକ ପଦ ସ୍ୱତନ୍ତ୍ର ଅଲଗା ଗୋଟିଏ ଅର୍ଥ ପ୍ରକାଶ କରୁଥିଲେ ସେହି ପ୍ରତି ପଦର ଆଦ୍ୟରେ ବଡ଼ ଅକ୍ଷର ବ୍ୟବହାର ହୋଇଥାଏ ଯଥା—

Hari Sankar Rai

ଏଠାରେ Hari , Sankar ଓ Rai ଏହି ତିନୋଟିପଦ ସ୍ୱତନ୍ତ୍ର ସ୍ୱତନ୍ତ୍ର ରହି ନିଜ ନିଜ ଅର୍ଥ ପ୍ରକାଶ କରୁଅଛି , ପ୍ରଥମ ପଦସହିତ ଦ୍ୱିତୀୟ ପଦ ମିଳିତ ହୋଇ ଅର୍ଥ ପ୍ରକାଶ କରିବାକୁ ନାହିଁ ଏଣୁ ପ୍ରତ୍ୟେକ ଶବ୍ଦର ଆଦ୍ୟରେ ବଡ଼ ଅକ୍ଷର ବ୍ୟବହାରହୋଇ ଅଛି , କିନ୍ତୁ Kumudinikanta ନାମରେ Kumudini ଓ Kanta ମିଳିତ ହୋଇ ଗୋଟିଏ ସ୍ୱତନ୍ତ୍ର ଅର୍ଥ ପ୍ରକାଶ କରୁଅଛି , ଏଣୁ Kumudini ର K ବଡ଼ Kanta ର K ବଡ଼ ନକରି Kumudinikanta ର K ମାତ୍ର ବଡ଼ କରାଗଲା । ଓ ବଂଶର ଉପାଧି ର ଆଦ୍ୟ ଅକ୍ଷର ମଧ୍ୟ ତଦ୍ରୂପ ସର୍ବଦା ବଡ଼ଅକ୍ଷର ଦ୍ୱାରା ଲେଖିବାକୁ ହେବ , ଯଥା: — Deb, Misra Singh Rai ଇତ୍ୟାଦି ।

ଚିଠିର ବହିରାବରଣ ଉପରେ ଠିକଣା ଲେଖିବାକୁ ହେଲେ କେତେକ ଶବ୍ଦ ବ୍ୟବହୃତ ହୋଇଥାଏ ସେ ସବୁର ଉଚ୍ଚାରଣ ବନାନ , ଅର୍ଥ ଓ ବ୍ୟବହାର ନିମ୍ନ ପ୍ରକାରେ ହୁଏ , ଯଥା: —

Digitized by PPRACHIN, SOA

| ପଦ | ଉଚ୍ଚାରଣ | ଅର୍ଥ |
| --- | --- | --- |
| Paid ବା | ପେଡ = | ଉପଯୁକ୍ତ ଷ୍ଟାମ୍ପ ଟିକଟ ଦିଆ ହୋଇଅଛି |
| Stamped | ଷ୍ଟାମ୍ପ୍‌ଡ = | " |
| Registered | ରେଜିଷ୍ଟାର୍ଡ= | ରେଜଷ୍ଟ୍ରୀ କରା ହୋଇଅଛି |
| Via | ଭାୟା = | ଯେଉଁମାର୍ଗ ଦେଇ ଚିଠୀ ପଠାଇବାକୁ ହେବ |
| P.O. | ପିଓ = | ପୋଷ୍ଟାଫିସ |
| Dist | ଡିଷ୍ଟ୍ରିକ୍ଟ = | ଜିଲ୍ଲା |

ଚିଠି ଉପରେ ଟିକଟ ନଲଗାଇ ବେରଙ୍ଗ ଦେବାକୁ ହେଲେ ଚିଠିର ବହିରାବରଣ ଉପରେ Unpaid ଅନପେଡ ଲେଖିବାକୁ ହେବ ।

୮ ଚିଠୀକୁ ପୁଲନ୍ଦା ମଧ୍ୟରେ ବନ୍ଦକରି ତାହାକୁ ଓଜନ କରିବାକୁ ହେବ, ଅର୍ଦ୍ଧ ତୋଳା ଓଜନ ହେଲେ ଦୁଇପଇସା ଓ ଅର୍ଦ୍ଧ ତୋଳାରୁ ଅଧିକ ହୋଇ ତୋଳା ପର୍ଯ୍ୟନ୍ତ ଓଜନ ହେଲେ ଏକ ଅଣାର ଟିକଟ ଲଗାଇବାକୁ ହେବ । କିନ୍ତୁ ଦେଢ଼ ତୋଳାରୁ ଅଧିକ ବା ଉନତେଇ ଓଜନ ହେଲେ ଦୁଇ ଅଣାର ଟିକଟ ଲଗିବ ।

ଏହିପରି ପ୍ରତି ଦେଢ଼ ତୋଳାର ବୃଦ୍ଧି ସଙ୍ଗେ ଏକ ଏକ ଅଣା ଲଗାଇବାକୁ ହେବ ଏପ୍ରକାର ନିୟମରେ ଟିକଟ ଦିଆହେଲେ Paid ବା Stamped ଚିଠୀର ବହିରାବରଣ ଉପରେ ଲେଖା

Digitized by PPRACHIN, SOA

ହୁଏ ।

୨ ଚିଠି ରେଜଷ୍ଟରୀ କରିବାକୁ ହେଲେ ଉପଯୁକ୍ତ ଘରେ ( ୧ ନମ୍ବର ଅନୁସାରେ ) ଟିକଟ ଲଗାଇ ଅଧିକା ଦୁଇଅଣାର ଟିକଟ ଦେବାକୁ ହେବ ।
ପେୟୀ ( ପ୍ରାପ୍ତ ବ୍ୟକ୍ତିର ) ରସିଦ ପାଇବାକୁ ଇଚ୍ଛାଥିଲେ ରେଜଷ୍ଟରୀ ନିମନ୍ତେ ଦୁଇଅଣା ଓ ରସିଦ ନିମନ୍ତେ ଏକଅଣା ଏରୂପ ତିନିଅଣା ଲଗାଇ ଉପରେ Registered ବୋଲି ଲେଖିବାକୁ ହେବ ।

୩ ପତ୍ରର ନିମ୍ନଭାଗ ବାମକୋଣ ପାଖରେ ପ୍ରେରକର ନାମ ଓ ସ୍ଥାନ ଲେଖିବାକୁ ଇଚ୍ଛାହେଲେ ପେୟୀର ନାମ, ଠିକଣା ଲେଖି ଉପରେ From ଲେଖିବାକୁ ହେବ; Paid ପତ୍ର ଉପରେ ପ୍ରେରକର ନାମ ଠିକଣା ଲେଖା ଯାଇ ପାରେ ବା ନ ଲେଖିଲେ କୌଣସି କ୍ଷତି ହୁଏ ନାହିଁ । କିନ୍ତୁ ରେଜିଷ୍ଟର ପତ୍ର ଉପରେ ସର୍ବଦା ଲେଖିବାର ଉଚିତ । ରେଜିଷ୍ଟରୀ ଚିଠିରେ ଲଫାମୋହର ଦେବାକୁ ହେବ ।

୪ ଯେ ନିକଟବର୍ତ୍ତୀ ହେଡ ଅଫିସ ବା ସବ ଅଫିସ ହୋଇ ଚିଠି ପେୟୀର ନିକଟକୁ ଯାଏ ସେହି ପୋଷ୍ଟ ଅଫିସ ଅଦ୍ୟରେ Via ଶବ୍ଦ ଲେଖାହୁଏ ।

୫ ପେୟୀର ଘର ଯେଉଁ ଗ୍ରାମ ପାଖରେ ଥାଏ ସେହି ଗ୍ରାମରେ ଯଦି ପୋଷ୍ଟ ଅଫିସ ଥାଏ ତେବେ ଗ୍ରାମର ନାମର ଶେଷରେ P. O. ବୋଲି ଲେଖା ହୁଏ ଯେହେତୁ P. O. ପୋଷ୍ଟ ଅଫିସର ସାଙ୍କେତିକ ନାମ ମାତ୍ର, ଗ୍ରାମରେ ପୋଷ୍ଟାଫିସ ନଥିଲେ ଗ୍ରାମର ନାମ ଶେଷରେ P. O. ଲେଖା ଯାଏ ନାହିଁ ବ୍ରେଞ୍ଚ ଅଫିସର ନାମ ଲେଖି ତାହାର ଶେଷରେ P. O. ଲେଖି

Digitized by PPRACHIN, SOA

